ଦ୍ୱାଦଶ ବାର୍ଷିକ

କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀର

ପ୍ରଥମ ଦିବସରେ

ପ୍ରତିଷ୍ଠାତା-ସମ୍ପାଦକ

ଶ୍ରୀ ବଚ୍ଛନ୍ଦଚରଣ ପଟନାୟକଙ୍କ

# ଅଭିଭାଷଣ

୨୭ । ୫ । ୧୯୫୫

# ଜୟ ମା କଳିଙ୍ଗ ଭାରତୀ

**ଉପସ୍ଥିତ କଳିଙ୍ଗପ୍ରାଣ ଭଞ୍ଜପ୍ରେମୀ ସୁଧୀମଣ୍ଡଳ !**

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ଆଜି ଦ୍ୱାଦଶ ବର୍ଷରେ ପଦାର୍ପଣ କରିଅଛି । ଶିକ୍ଷିତମାନଙ୍କ ମଧ୍ୟରେ ଅପପ୍ରଚାରର ଫଳରେ କବିସମ୍ରାଟଙ୍କ ପ୍ରାପ୍ୟ ପୂଜା ପ୍ରାୟ ଏକଶତାବ୍ଦୀକାଳ ଶୋଚନୀୟଭାବରେ ହ୍ରାସ ଲାଭ କରିଥିଲା । ଏହାର ସମ୍ୟକ୍ ପ୍ରତିକାର ନିମନ୍ତେ ତରୁଣମାନଙ୍କୁ ନେଇ ମୋତେ ବାରବର୍ଷ ତଳେ ଉତ୍କଳ ଗ୍ଲନ ସାହିତ୍ୟ ସମାଜ ରୂପକ ସ୍ୱତନ୍ତ୍ର ସାହିତ୍ୟ ଅନୁଷ୍ଠାନ ଗଢ଼ିବାକୁ ପଡ଼ିଥିଲା । ଆଜି ଏ ଅନୁଷ୍ଠାନର ନିରବଚ୍ଛିନ୍ନ ସାଧନା ଫଳବତୀ ହୋଇଅଛି ଏବଂ କବିସମ୍ରାଟ ଆଜି ସମଗ୍ର ଜାତିର ପ୍ରଗାଢ଼ ଅନୁରକ୍ତି ଓ ଭକ୍ତିର ସ୍ୱର୍ଣ୍ଣସିଂହାସନରେ ଅଧିଷ୍ଠିତ ହୋଇ ଅଛନ୍ତି । ବାରବର୍ଷ ତଳେ ଶିକ୍ଷିତ ସମାଜରେ ଭଞ୍ଜପୂଜା ଉପହାସର ସାମଗ୍ରୀ ଥିଲା । କିନ୍ତୁ ଏବେ ତାହା ପୁରାପୁରି ଦୂର ଯାଇଅଛି ଏବଂ ଅତୀତର ଭଞ୍ଜ-ଉପହାସକମାନେ ଆଜି ଭଞ୍ଜ-ଉପାସକରେ ପରିଣତ ହୋଇଅଛନ୍ତି ।

ଉତ୍କଳ ଗ୍ଲନ ସାହିତ୍ୟ ସମାଜର ଯେଉଁ ସଭ୍ୟମାନେ ଅନ୍ୟୂନ ପାଞ୍ଚବର୍ଷକାଳ ସାରସ୍ୱତ କ୍ଷେତ୍ରରେ ଶୁଦ୍ଧ ଜାତୀୟ ପରମ୍ପରା ଅନୁସରଣ କରି ସାଧନା କରିଅଛନ୍ତି, ସେମାନଙ୍କୁ ଓ ଆମ୍ଭମାନଙ୍କ ଆଦର୍ଶ ପ୍ରତି ସମ୍ୟକ୍ ଅନୁରାଗୀ ବାହାରର ଆଉ କେତେକ ବ୍ୟକ୍ତିଙ୍କୁ ନେଇ ମୁଁ କଳିଙ୍ଗ ଭାରତୀ ଅନୁଷ୍ଠାନ ସଂଗଠନ କରିଅଛି ଏବଂ ୧୮୬୦ ମସିହାର ସୋସାଇଟିଜ୍ ରେଜିଷ୍ଟ୍ରେସନ ଆକ୍ଟ୍ ଅନୁସାରେ ଏ ଅନୁଷ୍ଠାନକୁ ସରକାରଙ୍କ ଦ୍ୱାରା ସ୍ୱୀକୃତ କରାଇ ନେବାର ବ୍ୟବସ୍ଥା କରିଅଛି । ଉତ୍କଳ ଗ୍ଲନ ସାହିତ୍ୟ ସମାଜ ଏହାର ଅଙ୍ଗୀଭୂତ ସଂସ୍ଥା ରୂପେ ବର୍ତ୍ତମାନ ରହି ବର୍ଷକୁ ବର୍ଷ ନୂତନ ନୂତନ ସଭ୍ୟ ଯୋଗାଇ ଏହାକୁ ପରିପୁଷ୍ଟ କରିବ ଏବଂ ସାହିତ୍ୟକ୍ଷେତ୍ରରେ କଳିଙ୍ଗ ଭାରତୀ ସାମ୍ମୁଖ୍ୟ ଶୁଦ୍ଧ ଜାତୀୟତାମୂଳକ ଗୋଟିଏ ବଳିଷ୍ଠ ଅଭିମୁଖ୍ୟ ଉପସ୍ଥାପିତ କରି ପରିଣାମରେ ଏକ ଦୁର୍ଦ୍ଦମନୀୟ ମହାଶକ୍ତିରେ ପରିଣତ ହେବ ।

କବିସମ୍ରାଟ ଓ କୋଣାର୍କ କଳିଙ୍ଗକୃଷ୍ଟିର କମନୀୟତମ ପ୍ରକାଶ । ଏ ଦୁହିଁଙ୍କ ଦ୍ୱାରା ବାଞ୍ଛିତ ଜାତୀୟ ସାଧନାର ତୁଙ୍ଗିମା ବିଷୟରେ କଳିଙ୍ଗବାସୀଙ୍କୁ ଉଦ୍‌ବୁଦ୍ଧ କରି ଦେଲେ ଜାତୀୟ ଜାଗରଣ ପାଇଁ ଆଉ କିଛି କରିବାକୁ ପଡ଼ିବ...

ନାହିଁ । ଏହି ଦୃଢ଼ ବିଶ୍ୱାସ ଘେନି ମୁଁ ମୋ ଆନ୍ଦୋଳନ ଆରମ୍ଭ କରିଛି । ଏଗାର ବର୍ଷ କବିସମ୍ରାଟ ଜୟନ୍ତୀ ପାଳନ କଲା ପରେ ଗଲାଥର ବର୍ଷ କଳିଙ୍ଗ ଭାରତୀ ଓ ଉତ୍କଳ ଯୁବ ସାହିତ୍ୟ ସମାଜ କୋଣାର୍କ ଜୟନ୍ତୀରେ ଶୁଭ ଦେଇଅଛନ୍ତି । ଏ ସବୁ ଜୟନ୍ତୀକୁ କେବଳ ସ୍ମୃତି-ପୂଜା ଉତ୍ସବ ବୋଲି ଜ୍ଞାନ କଲେ ଭ୍ରମ ହେବ । ବିଜାତୀୟ ମନୋଭାବ ଦ୍ୱାରା ବିଦୂଷିତ ଅଧୁନାତନ ଜାତୀୟ ଅଭିମୁଖ୍ୟକୁ ଆମୂଳଚୂଳ ପରିବର୍ତ୍ତନ କରିବାହିଁ ଏ ସବୁ ଜୟନ୍ତୀର ଲକ୍ଷ୍ୟ । ଜୟନ୍ତୀମାନଙ୍କ ସଂକ୍ରାନ୍ତ ସାଂସ୍କୃତିକ ବିନୋଦନ କେବଳ ଲଘୁ ଆମୋଦପ୍ରମୋଦ ପାଇଁ ଉଦ୍ଦିଷ୍ଟ ନୁହେଁ । କଳିଙ୍ଗ ଭାରତୀ ଆନ୍ଦୋଳନର ଆରମ୍ଭ ପୂର୍ବରୁ ପାଲା, ଦାସକାଠିଆ, ଗୋଟିପୁଅ ପ୍ରଭୃତି ଅନୁଷ୍ଠାନ ଶିକ୍ଷିତ ମହଲରେ ଜୁଗୁପ୍ସାର ସାମଗ୍ରୀ ଥିଲା । ଛନ୍ଦ ଓ ଓଡ଼ିଶୀ ରାଗ ରାଗିଣୀମାନଙ୍କର ଶିକ୍ଷିତ ମହଲରେ ଆଜି ଯେଉଁ ଦୁର୍ଦ୍ଦଶା ଏ ଅନୁଷ୍ଠାନମାନଙ୍କର ମଧ୍ୟ ଦିନେ ଅନୁରୂପ ଦୁର୍ଦ୍ଦଶା ଥିଲା । କବିସମ୍ରାଟ ଓ ଅନ୍ୟାନ୍ୟ କବି ମହାକବିମାନଙ୍କ ଜୟନ୍ତୀ ବର୍ଷ ବର୍ଷ ବ୍ୟାପୀ କ୍ରମାଗତ ଭାବରେ ଏ ସବୁ ଅନୁଷ୍ଠାନକୁ ଅପରିହାର୍ଯ୍ୟ ଅଙ୍ଗରୂପେ ଘେନି ଅନୁଷ୍ଠିତ ହେବାଦ୍ୱାରା ଶିକ୍ଷିତ ମହଲର ମନୋଭାବର ପରିବର୍ତ୍ତନ ଘଟିଅଛି ଏବଂ କଳିଙ୍ଗ କମନୀୟ କୃଷ୍ଟିର ଶୋଚନୀୟ ଭାବରେ ଅବହେଳିତ ଓ ଲୋପୋନ୍ମୁଖ ବହୁ ଅମୂଲ୍ୟ ଅଙ୍ଗର ପୁନରୁଦ୍ଧାର ଘଟିଅଛି । ଯେଉଁ ଆଦର୍ଶ ଘେନି ଆମ୍ଭେମାନେ ଏତାବତ୍‌କାଳ ଯଥାଶକ୍ତି କାର୍ଯ୍ୟ କରି ଆସିଥାଇଁ, ଅତ୍ୟନ୍ତ ସୁଖର ବିଷୟ ଯେ ଜାତୀୟ ସରକାର ସେ ଆଦର୍ଶର ସମ୍ୟକ୍ ପରିପୂର୍ତ୍ତି ନିମନ୍ତେ ନିକଟରେ ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ ସ୍ଥାପନ କରି ଆମ୍ଭମାନଙ୍କ ପଥ ସୁଗମ କରି ଦେଇ ଅଛନ୍ତି ।

କଳିଙ୍ଗର ସାହିତ୍ୟ ସଙ୍ଗୀତ ଓ କଳାରେ ଯାହା ସର୍ବୋତ୍ତମ କବିସମ୍ରାଟ ଓ କୋଣାର୍କକୁ କେନ୍ଦ୍ର କରି ସେ ସବୁକୁ ଉପସ୍ଥାପନପୂର୍ବକ ଯୁଗୋପଯୋଗୀ ପରମ୍ପରାସମ୍ମତ ପ୍ରଗତିଶୀଳ ନବୀନ ସୃଷ୍ଟି ପାଇଁ ଜାତିକୁ ଉଦ୍‌ବୁଦ୍ଧ କରିବା କଳିଙ୍ଗ ଭାରତୀ ଓ ଉତ୍କଳ ଯୁବ ସାହିତ୍ୟ ସମାଜର ଲକ୍ଷ୍ୟ । ବାର୍ଷିକ କବିସମ୍ରାଟ ଓ କୋଣାର୍କ ଜୟନ୍ତୀ ଏହି ଲକ୍ଷ୍ୟର ପରିପୂର୍ତ୍ତିମୂଳକ ଜାତୀୟ ଉଦ୍ୟମ । ଭଗବତ୍ ଆଶିଷର ପ୍ରତୀକରୂପେ ବର୍ଷ ବର୍ଷ ଧରି ଆପଣମାନଙ୍କ ସ୍ନେହ ସହାନୁଭୂତି ଆମ୍ଭମାନଙ୍କ ଉଦ୍ୟମ ଉପରେ ପ୍ରବର୍ଷିତ ହେଉଅଛି । ସେବାର ଏ ଅପୂର୍ବ ସୁଯୋଗ ନିରବଚ୍ଛିନ୍ନ ଭାବରେ ଆମ୍ଭମାନଙ୍କର ଲଭ୍ୟ ହେଉ; ଏହାହିଁ ଆମ୍ଭମାନଙ୍କର କାମନା ଓ ଆପଣମାନଙ୍କ ସମକ୍ଷରେ ଆମ୍ଭମାନଙ୍କର ବିନମ୍ର ନିବେଦନ ।

କବିସମ୍ରାଟ ୧୬୮୫ ଅବ୍ଦରେ ଗଞ୍ଜାମର ଘୁମୁସର ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ସେତେବେଳକୁ କଳିଙ୍ଗ ଭାରତୀଙ୍କ କୁଞ୍ଜ କଳକୋକିଳ କୂଜନରେ ସମ୍ୟକ ମୁଖରିତ ହୋଇ ସାରିଥିଲା ।

ରହସ୍ୟ ମଞ୍ଜରୀ କାବ୍ୟପ୍ରଣେତା ଦେବଦୁର୍ଲ୍ଲଭ ଦାସ ଗାଇ ସାରିଥିଲେ:—

"ଶ୍ରୀକୃଷ୍ଣ ବୋଲନ୍ତି ଚନ୍ଦ୍ର ଦେବତାର
କୋଟି କୋଟି କନ୍ୟା ଅଛନ୍ତି
ଯାମିନୀ କନ୍ୟା ତା କ୍ଷଣେହେଁ ନ ଥିଲେ
ଛାଡ଼ଇ ତାର ଜ୍ୟୋତି କାନ୍ତି
ସୁନ୍ଦରି !
ଶଚୀ ବିନୁ ଇନ୍ଦ୍ର ନୁହଇ
ରାଧାକୃଷ୍ଣ ବୋଲି ଯୁଗ ଯୁଗାନ୍ତରେ
ଶାହାସ୍ତ୍ର ପୁରାଣେ କହଇ ।"

ଉଷାଭିଳାଷ କାବ୍ୟକର୍ତ୍ତା ଶିଶୁଶଙ୍କରଙ୍କ କଣ୍ଠରୁ ଫୁଟି ସାରିଥିଲା :—

"ପଲଙ୍କ ତେଜିଣ ଉଠିଲା ସୁମୁଖୀ ସପନ ସଙ୍କେତ ପାଇଣ
ଆହା ପ୍ରାଣନାଥ କେଣେ ଗଲ ବୋଲି ଉଚ୍ଚସ୍ୱରେ କରେ କାରୁଣ୍ୟ
ଦଇବ ! ଦେଖାଇ ନିଧି ଘେନିଗଲ
ଶିଶୁ କୁମାରୀ ମୁଁ କିଛି ନ ଜାଣଇ କପାଁଇ ମୋତେ ଏହା କଲ ।
ସପନ ଅଙ୍ଗସଙ୍ଗ ଲଭି ଅଙ୍ଗନା ବିରହେ ବାଉଳ ବଚନ
ରତିଲାଳସେ ଅଳସଭର ତନୁ ତରଳ ଚକିତ ଲୋଚନ
ହେ ନାଥ ! ଏହିକ୍ଷଣି ଥିଲ ପଲଙ୍କେ
ବିନା ଅପରାଧେ କି କେ ଛାଡ଼ିଗଲ କାମିନୀ ମରଣ ନିଃଶଙ୍କେ ।"

ରୁକ୍ମଣୀବିଭା କବି କାର୍ତ୍ତିକ ଦାସ ଗାଇ ସାରିଥିଲେ :—

"ଦର୍ପଣ ଅଟଇ ଅତି ଜଡ଼ କଠିନ
ତାହାକୁ ଉପମା କପାଁ ଦେବା ମୂରଖେଣ ?
କମଳ ମୁଦ୍ରିତ ନିଶାକାଳେଣ ହୋଏ
ରୁକ୍ମଣୀ ମୁଖ ମଣ୍ଡଳ ସର୍ବଦା ଶୋହେ ।
ଅଳକା ବେଢ଼ିଣ ମୁଖ ଦିଶଇ ଶୋଭା
ତହିଁକି ଉପମା କିସ ଦେବା କି ଅବା !

ସମ୍ପୂର୍ଣ୍ଣ ଚନ୍ଦ୍ରମାମୁଖୁଁ କଳଙ୍କ କାଢ଼ି
ଯେବେ ତା ଗଢ଼ନ୍ତା ବିଧି ମଣ୍ଡଳ ବେଢ଼ି
ନିସ କାଳି ଚନ୍ଦ୍ରମଣ୍ଡଳ ହେବ ଉପମା
ସହିତେ ରୁକ୍ମିଣୀମୁଖ ଲାବଣ୍ୟ ସୀମା
ଭ୍ରୂଲତାକୁ ସମ କାହିଁ କୁସୁମଧନୁ
ଦେଖିଣ ସହିତେ ଭଜିଅଛୁ ଅତନୁ ।
ଅଭିନବ ବିକଚ କମଳ ନୟନ
ଖଞ୍ଜନ ମଦର ମୀନ ବାଳ ହରିଣ
ରୁକ୍ମିଣୀ ନୟନଭଙ୍ଗୀ ପାଇବେ କାହିଁ
କଟାକ୍ଷେ ମଦନବାଣ ଅଛି ବିଷାଇ''—ଇତ୍ୟାଦି ।

ରସବାରିଧିକାର କବି ବୃନ୍ଦାବନ ଦାସ ଗାଇଥିଲେ:—

''କ୍ଷଣମାନେ କରି ବିଜେ ଶଯ୍ୟାର ଉପରେ
ମଞ୍ଜୀର ରଞ୍ଜିବି ତବ ନଳିନ ପଦ୍ମରେ ଯେ ।
ବଦନଚନ୍ଦ୍ରମା କି ଗଳିତାମୃତ ଧାର
କହି ସଖି ବଚନ ଅମୃତ ରସସାର ଯେ ।
ବିରହ ଅନଳ ଶାନ୍ତ ହୋଇବା ନିମନ୍ତେ
ପୟୋଧରରୋଧକ କାଢ଼ିବି ନୀଳବସ୍ତ୍ରେ ଯେ ।
ପ୍ରିୟ ପରିରମ୍ଭଣ ରହସ୍ୟ ଭାବ ଆଶେ
ପୁଲକିତ ବପୁ ମୋର ଅତି ରସବଶେ ଯେ ।
ମମ ହୃଦେ ନିବେଶପ୍ରୁ କୁଚକୁମ୍ଭ ବେନି
ମନସିଜ ତାପ ଶେଷ କରସି ଭାବିନୀ ଯେ ।''

କବି ପ୍ରତାପ ରାୟ ଶଶିଶେଣା କାବ୍ୟରେ ଗାଇଥିଲେ :—

''ଚକୋଆ ବିଚ୍ଛେଦ ଭୀତି          ପକ୍ଷୀଏ ବସାକୁ ଚଳି
ବିଟପ ଯୁବତୀଙ୍କର ବିଷାଦ ମନ
ସନ୍ନିଧେ ଦୂତୀକି ରାଇ          କହନ୍ତି ବିନୟ ହୋଇ
କେ କାହାକୁ ତହିଁ କରୁଅଛନ୍ତି ମାନ
କଣ୍ଠୁଆଳ ତେଜ ବଢ଼ିଲା
ଗ୍ରୀଷ୍ମର ଝସକର ବାଟେ ବୁଡ଼ା ପଡ଼ିଲା ।''

କବି ଅର୍ଜୁନ ଦାସ ରାମବିଭା କାବ୍ୟରେ ଲେଖିଥିଲେ :—

"ସୁବର୍ଣ୍ଣ ଥାଳୀରୁ ଦେବୀ ନ କାଢ଼ନ୍ତି ହସ୍ତ
କରର କଙ୍କଣମୁଖେ ଧରଣେ ରଘୁନାଥ ।
ଅନୁରାଗଭରେ ମନ ବଳିଆର ପଣେ
ଝସିଅ ପଶିଅ ପୁଣ ପାଲଟି ନୁଆଣେ ।
ଗୁରୁଜନ ବିଗୁରିଲେ ସୀତା ଲାଜ କଲା
ଆମ୍ଭର ଥିବାରୁ ସୀତା ଅନ୍ନ ନ ଭୁଞ୍ଜିଲା ।"

ଏହାପରେ ମଧୁସୂଦନ ଦାସ, ହରିହର ଦାସ, ରାମଚନ୍ଦ୍ର ପଟ୍ଟନାୟକ ପ୍ରଭୃତି ଅନ୍ୟାନ୍ୟ ବହୁ କବି ସପ୍ତଦଶ ଶତାବ୍ଦୀ ବେଳକୁ ନିଜ ନିଜର କାବ୍ୟକୃତିମାନଙ୍କ ଦ୍ୱାରା କଳିଙ୍ଗର ସାହିତ୍ୟକୁ ସମୃଦ୍ଧ କରିଥିଲେ । କବିସମ୍ରାଟଙ୍କ ପିତାମହ ଧନଞ୍ଜୟ ଭଞ୍ଜ ମଧ୍ୟ ସାମାନ୍ୟ କବି ନ ଥିଲେ । ତାଙ୍କ ପ୍ରଣୀତ ରଘୁନାଥ ବିଳାସ ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ଛାଞ୍ଚର କାବ୍ୟ ଏବଂ ତାକୁ ଆଦର୍ଶରୂପେ ରଖି ଏବଂ ତାଠାରୁ ବହୁ ଗୁଣରେ ଅଧିକତର ମନୋଜ୍ଞ କରି କବିସମ୍ରାଟ ବି—ଆଦ୍ୟ ନିୟମରେ ବୈଦେହୀଶବିଳାସ ପ୍ରଣୟନ କଲେ ।

ଉପରଲିଖିତ କବିମାନଙ୍କର ପ୍ରାୟ ଦେଢ଼ ଶହ ବର୍ଷ ପୂର୍ବରୁ ବାଣପୁର ରାଜା ରଘୁନାଥ ହରିଚନ୍ଦନ ଲୀଳାବତୀ ନାମକ ରସକାବ୍ୟ ଲେଖିଥିଲେ । ଏହି ଲୀଳାବତୀର ଛାଞ୍ଚରେ କବିସମ୍ରାଟଙ୍କ ଲାବଣ୍ୟବତୀ କାବ୍ୟ ପରିକଳ୍ପିତ ଓ ଲିଖିତ ହୋଇଅଛି । ରଘୁନାଥ ହରିଚନ୍ଦନଙ୍କ ପୂର୍ବରୁ ଓଡ଼ିଶାରେ ବିଷ୍ଣୁ ଦାସ ନାମରେ ଜଣେ ଅତି ପ୍ରସିଦ୍ଧ କବି ଥିଲେ । ରାଜା ରଘୁନାଥ ହରିଚନ୍ଦନ ତାଙ୍କୁ "ଭାତ ବରତନ" ଦେଇ ନିଜର ଗୁରୁ କରି ରଖିଥିଲେ ବୋଲି ତାଙ୍କ ଲୀଳାବତୀ କାବ୍ୟରେ ଲେଖି ଅଛନ୍ତି ଏବଂ ତାଙ୍କ ପ୍ରସିଦ୍ଧି ବିଷୟରେ କହିଛନ୍ତି ଯେ :—

"ବିଷ୍ଣୁ ଦାସ ନାମରେ ଯେଉଁ କବି
ଗୀତେ ପୂରାଇଣ ଅଛି ପୃଥିବୀ ।"

ଏହି ବିଷ୍ଣୁ ଦାସଙ୍କର ପ୍ରେମଲୋଚନା ନାମକ ଖଣ୍ଡିଏ ମନ୍ଦ କାବ୍ୟ ନିକଟରେ ଆବିଷ୍କୃତ ହୋଇଅଛି । ଏ କାବ୍ୟ ସଂସ୍କୃତ ନୈଷଧ କାବ୍ୟର ଛାଞ୍ଚରେ ଲିଖିତ । ବିଷ୍ଣୁ ଦାସଙ୍କ ମନ୍ଦାକିନୀ ଚଉତିଶାରୁ ଉଦ୍ଧୃତ ନିମ୍ନଲିଖିତ ପଂକ୍ତି ତାଙ୍କ କବିଶକ୍ତି ଓ ଭଞ୍ଜୀୟ ପୂର୍ବଯୁଗ କବିତାମାଧୁରୀର ପରିଚୟ ଦିଏ—

"ନଳିନ ଇନ୍ଦୀବର    ମାଲକ୍ଷଣ୍ଡ ଚକୋର
ମଦର ମୀନ ଖାମଣର
ନୟନ ତୁଳନାକୁ    କଉଁ ଗୁଣେ ସ୍ୱେ ସମ
ଚଞ୍ଚଳାୟତ ଲୋଚନାର ରେ
ମନ୍ଦାକିନ !
ନାଗସ୍ୱରକୁ ମୋତେ ଗୃହିଁ
ନେବ ମନ୍ତ୍ରରେ ଓଲଟାଇ
ନ ଗୃହିଁଲ ପରିସ୍ୱେ    କରି ସେ ଗୃହିଁଗଲ
ନୟନରୁ ତା ଯାଉନାହିଁ ରେ
ମନ୍ଦାକିନ !
ଚତୁର ପଣ ତାର    ଲକ୍ଷିବାକୁ ଗୋଚର
ନୋହଇ ସମସ୍ତ ପ୍ରକାରେ
ଚଳିବା ବିନା ଯଥା    ମହା ଗୁପତ ହୋଇ
ଅନଳ ଥାଇ ବ୍ୟଜନରେ ରେ
ମନ୍ଦାକିନ !
ଚମତ୍କାର ଏହା ତାର
ଚଞ୍ଚଳାୟତ ନୟନାର
ଗୃହିଁବା ମାତ୍ରେ    ଅନାୟାସରେ କହି ଯାଇ
ଅସୀତ୍କାର ସୀତ୍କାର ରେ
ମନ୍ଦାକିନ !"

ବଚ୍ଛ ଦାସଙ୍କ ପ୍ରଣୀତ କଳସା ଚଉତିଶା ଏହାଠାରୁ ମଧ୍ୟ ପ୍ରାଚୀନ । ପଦ ଯୋଜନା ନିମ୍ନଲିଖିତ ଧରଣରେ—

"ଝୁମ୍ପୁ ଝୁମୁ ବାଜା ଘଣ୍ଟିଘାଗୁଡ଼ି ଲୋଗୁଏ
ଝମକୁଣ ଅଛୁ କରେ ତ୍ରିଶୂଳ ଗୋଟାଏ ।
ଝୁଲି ହୋଇ ଝିଙ୍କି ହୋଇ ପଡ଼ୁଛୁ ଢୁଳାଇ
ଝିଅ କି ନାଗୁଣୀ ପ୍ରାୟେ ଦଶିବୁ ଗୋ ତୁହି ।"

## କବିସମ୍ରାଟଙ୍କ ପୂର୍ବ ଯୁଗ

ଛାନ୍ଦ ନିବନ୍ଧ କାବ୍ୟ ଓ ଖଣ୍ଡକାବ୍ୟମାନଙ୍କର ଭୂୟୋବିକାଶର ଉପର ସୂଚନା ଦେଇ ମୁଁ ବର୍ତ୍ତମାନ କବିସମ୍ରାଟଙ୍କ ଯୁଗ ପର୍ଯ୍ୟନ୍ତ ଓଡ଼ିଶି ସଙ୍ଗୀତର

କ୍ରମବିକାଶର ସୂଚନା ଦେଉଅଛି, କାରଣ ଛାନ୍ଦ ଓ ଓଡ଼ିଶୀ ସଙ୍ଗୀତକୁହିଁ ବାହନ କରି କବିସମ୍ରାଟଙ୍କ ଲୋକୋତ୍ତର ପ୍ରତିଭା ବିକଶିତ ହୋଇଅଛି ।

**ପଞ୍ଚଦଶ ଶତାବ୍ଦୀ**

ପରଶୁରାମ ବିଜୟ ସଂସ୍କୃତ ନାଟକରେ ମହାରାଜା କପିଳେନ୍ଦ୍ର ଦେବଙ୍କ ଓଡ଼ିଆ ଗୀତ :—

"କେବଣ ମୁନି କୁମର ପରଶୁ ଦକ୍ଷିଣେ କର
ବାମେଣ ଶୋହେ ଧନୁଶର ନା
କୋପେଣ ବୋଲଇ ବାଇ ତ ତୁ ସେ ମୋ ବଧିଲୁ ତାତ
ଆଜ ତୋର ଛେଦିବଇଁ ମାଥ ନା
ଶୁଣ ରାଜନ ହେ. କଏ ତୋର ରାଜ୍ୟେ ବୁଦ୍ଧି ବଧେ ନା
ଏ ତୋର ଚନ୍ଦ୍ରବଦନ ମେଘେ କ ଢାଙ୍କିଲା ଜହ୍ନ
ତାହା ଦେଖି ବିକଳ ମୋ ମନ ନା
ଆବର ଦେଖଇ ଅରିଷ୍ଟି ରାଜ୍ୟେ ତୋ ରୁଧିର ବୃଷ୍ଟି
ଗୃହର ବେଢ଼ି ରୋଦନ୍ତି ଶୃଗାଳ ନା ।"

**ଷୋଡ଼ଶ ଶତାବ୍ଦୀ**

କବି ଚମ୍ପତି ରାଏ

( ରାଗ ମଲ୍ଲାର—ଆଦତାଳ )

"ଜୟ ଜୟ ହରିହର ମିଳିତ କଳେବର ସୁରନନ୍ଦନ ପୁରମନ୍ଦନୁଆ
ଖଗପତିବାହନ ଗୋପତି ବାହନ ଫଣିଶୟନ ଫଣିକ ବଣୁଆ
ଚନ୍ଦ୍ରକଶେଖର ଚନ୍ଦ୍ରଶେଖର ଶ୍ରୀଧର ଗଙ୍ଗାଧର ଇଆରେ
ଚକ୍ରାୟୁଧ ଅହୁ ତ୍ରିଶୂଳ ଆୟୁଧ ମା—ବଲ୍ଲଭ ଉମା—ବଲ୍ଲଭୁଆ ।"

**ସପ୍ତଦଶ ଶତାବ୍ଦୀ**

କବି ଚନ୍ଦୁଦତ୍ତ ଦାସ

( ଏକ ତାଳ )

"ସବ ଅବନୀପତି ବନ୍ଦିତେ ଶକତ ବିବିଧ ରଙ୍ଗରତ ବିହରନ୍ତିଆ
ଲାବଣ୍ୟେ ଗଞ୍ଜିତ ଲକ୍ଷ ରତିନାଥ ଗୌରବେ ଊଣକ ଚିରପତିଆ
ଦେବୀ ଭାନୁମତୀ ରସବତୀ ସଙ୍ଗତ ବିବିଧ ରଙ୍ଗଯୁତ ବିହରନ୍ତିଆ
ନୀଳଗିରି ଯେ ପତି ଚରଣ କମଳେ ମତି ବିଜୟୀ ତୁ ନରସିଂହ ନରପତିଆ ।"

## ରସକଲ୍ଲୋଳକାର ଦୀନକୃଷ୍ଣ ଦାସ

( ରାଗ ମୋହନା—ତାଳ ଖେମଟା )

"ବାଜେ ମୋହନ ବାଂଶରୀ ଗୋ ରାଧେ ପ୍ୟାରୀ
ଶ୍ରୀ ରାଧେ ରାଧେ ବାଜେ
ରଖିବ କି ପତିବ୍ରତ ବ୍ରତଛଡ଼ା ସେ ନିଯୁତ
ଜାତ ହୋଇଅଛନ୍ତି ବ୍ରଜେ ନାମ ବଂଶୀଧାରୀ । ୧ ।
ସାର ଦେବ ସେ ଅଧର ବରନାରୀମାନଙ୍କର
କଳ୍ପଗଛ କର ଏବେ ସେ କୁଞ୍ଜବିହାରୀ । ୨ ।"

## ନୃସିଂହ ପଟ୍ଟନାୟକ

( ଚମ୍ପୂ )

( ରାଗ କାଫି—ଏକତାଳି )

"ସମ୍ପୂର୍ଣ୍ଣ ସୁଧାକରବଦନା ବନ୍ଧୁ
ସୁନ୍ଦରମଣି ସବୁମଧ୍ୟମାରେ ତୁ ମୋ କରୁଣାସିନ୍ଧୁ ।
ସଖି ! ଶିରୀଷ ମୃଦୁ ସରୋଜ ବାସ
ଶମ୍ପାସୋଦର ବର୍ଣ୍ଣରେ ରମା କଲେ ଯେ ଅଙ୍ଗେ ବାସ ।
ସିନ୍ଦୂରାରୁଣ ବିମ୍ବ ବନ୍ଧୁଳି ଜବା
ସୁରଙ୍ଗି ତୋର ଦନ୍ତ ବାସଇରେ ସମ କି ଗୁଣେ ।

## ଧନଞ୍ଜୟ ଭଞ୍ଜ (କବିସମ୍ରାଟଙ୍କ ପିତାମହ)

ଚମ୍ପୂ

( ରାଗ କାମୋଦୀ—ତାଳ ଏକତାଳି )

"ଚଳି ଚଳି ହସି ହସି ଆସୁ ଯେ ଥାଜ
ତାଲେ କି ତା ନେତ୍ରପଥେ ଦେଖିବ ଆଜ । ୧ ।
ତଳ ଯେ ଚୁମ୍ବିଲ ହନେ ନୟନେ ତୋର
ତଗ ମେଲ ବିହ୍ୱଳ ଯେ ଗଲା ମୋହର । ୨ ।
ତାଜ ଗୋଲି ଲେଖଇଁ ତୋ କୁଚେ ଚନ୍ଦକ
ତମ କାମ ଚେତାଇ ତା ହରେ ବିବେକ । ୩ ।"

## ନୀଳକଣ୍ଠ ଭଞ୍ଜ (କବିସମ୍ରାଟଙ୍କ ପିତା)

( ରାଗ—କାଫି )

"ପ୍ରାଣବାନ୍ଧବୀ ଦିନେ ପ୍ରାଙ୍ଗଣ ପରେ
କର ଦେଇଣ ଥିଲା ଥୋଡ଼ିହସ୍ତରେ
ସେ ମୋ ଚମ୍ପକଗୋରୀ
ଧନ୍ୟ ଧନ୍ୟ ତାହାର ଶୋଭା ଗୃହଭିତରୀ । ୧ ।
ଜୁଡ଼ାରେ ଥିଲା ତାର କିଆ ପାଖୁଡ଼ା
ତା ଦେଖି ଅଙ୍ଗେ ହେଲା ଅନଙ୍ଗପୀଡ଼ା । ୨ ।
ଲଲାଟେ ଥିଲା ତାର ସିନ୍ଦୂର ବିନ୍ଦୁ
ତା ଦେଖି ବଢ଼ିଲା ଯେ ଆନନ୍ଦସିନ୍ଧୁ । ୩ ।
ଗଇରିକର ଚିତ୍ରା ଅଙ୍ଗେ ଶୋଭିତ
ତା ଦେଖି ଧଇର୍ଯ୍ୟ ମୋ ହୋଇଲା ହତ । ୪ ।"

ଏହି ପୃଷ୍ଠଭୂମିରେ ଅର୍ଥାତ ନିମ୍ନବିକାଶ ପଥରେ ଗତି କରି କଳିଙ୍ଗ ସାହିତ୍ୟ ଉତ୍କର୍ଷର ଏହି ସ୍ତରରେ ପହଞ୍ଚିଥିଲାବେଳେ କବିସମ୍ରାଟଙ୍କ ପ୍ରତିଭାର ପରିସ୍ଫୁରଣ ଘଟିଥିଲା । କ-ଆଦ୍ୟ ନିୟମରେ ଲିଖିତ ମହାକବି ଦୀନକୃଷ୍ଣଙ୍କ ଅଲୋକସାମାନ୍ୟ କୃତି ରସକଲ୍ଲୋଳ ମଧ୍ୟ ତାଙ୍କର ନୟନଗୋଚର ହେଲା; କିନ୍ତୁ ତହିଁରେ ମଧ୍ୟ ସେ ଲିପିଶିଳ୍ପର ଚରମୋତ୍କର୍ଷ ଦେଖିଲେ ନାହିଁ । କ-ଆଦ୍ୟ ଓ କ-ପ୍ରାନ୍ତ ନିୟମରେ ସେ କଳାକଉତୁକ ଲେଖିଲେ ଓ ବ-ଆଦ୍ୟ ନିୟମରେ ବୈଦେହୀଶବିଳାସ ଲେଖି ଦୀନକୃଷ୍ଣ ଦାସଙ୍କ ଯଶକୁ ମଧ୍ୟ ନିଷ୍ପ୍ରଭ କଲେ ।

କଳିଙ୍ଗ ଲିପିଶିଳ୍ପର ଉତ୍କର୍ଷ କବିସମ୍ରାଟଙ୍କ ରଚନାରେ ଭଙ୍ଗିମାର ଶୀର୍ଷ ଦେଶରେ ପହଞ୍ଚିଲା । ବତ୍ସ ଦାସ, ବିଷ୍ଣୁ ଦାସ, ରଘୁନାଥ ହରିଚନ୍ଦନ, ଦେବଦୁର୍ଲ୍ଲଭ ଦାସ, ବୃନ୍ଦାବନ ଦାସ, ଶିଶୁଶଙ୍କର ଦାସ, ମଧୁସୂଦନ ଦାସ, କାର୍ତ୍ତିକ ଦାସ, ଧନଞ୍ଜୟ ଭଞ୍ଜ, ହରିହର ଦାସ, ରାମଚନ୍ଦ୍ର ପଟ୍ଟନାୟକ, ଦୀନକୃଷ୍ଣ ଦାସ, ଚମ୍ପତି ରାୟ, ଯଦୁପତି ଦାସ ପ୍ରଭୃତି କାବ୍ୟ ଓ ସଙ୍ଗୀତ ରଚନାରେ ଯେଉଁ ଉତ୍କର୍ଷ ଅର୍ଜନ କରିଥିଲେ ଓ ଯେଉଁ ଯଶଲାଭ କରିଥିଲେ କବିସମ୍ରାଟଙ୍କ ରଚନାର ଉତ୍କର୍ଷ ସେ ଉତ୍କର୍ଷକୁ ପରାଭୂତ କଲା ଏବଂ କବିସମ୍ରାଟ ଯେଉଁ ଯଶରେ ବିଭୂଷିତ ହେଲେ, ତାହା ଯେପରି ସେ ଯଶ ମ୍ଳାନ ହେବାରୁ କବି-ସମାଜରେ କବିସମ୍ରାଟଙ୍କ ନାମ ସର୍ବାଗ୍ରେ ଉଚ୍ଚାର୍ଯ୍ୟ ହେଲା ।

କବିସମ୍ରାଟଙ୍କ ବୈଦେହୀଶବିଳାସର କଥାବସ୍ତୁ ଧନଞ୍ଜୟ ଭଞ୍ଜଙ୍କ ରଘୁନାଥବିଳାସର କଥାବସ୍ତୁ, ସତ୍ୟ ସମାନ ଓ ଲାବଣ୍ୟବତୀର କଥାବସ୍ତୁ ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀର କଥାବସ୍ତୁର ଅନୁରୂପ । ତାଙ୍କ ଲାବଣ୍ୟବତୀର "ଚେତ ଚତୁର୍ଥ ଗୃହୀଲା ନଶିନାଚେଶ ପାଶେ ନାହିଁ ଦିବ୍ୟ ତରୁଣ" ଛାନ୍ଦ ଶିଶୁଶଙ୍କର ଦାସଙ୍କ ଉଷାଭିଳାଷ କାବ୍ୟର "ଦଳଙ୍କ ଚେତନ ଉଠିଲା ସୁମୁଖୀ ସପନ ସଙ୍କେତ ପାଇଣ" ଛାନ୍ଦର ଅବିକଳ ପ୍ରତିଧ୍ୱନି—

"ଅବୋଧ ବାଳା ତୁ ନାହିଁ ବିଭାହେବୁ ବଲ୍ଲଭ ଗୁଣେ କି କେ ଦୁଃଖୀ
ମଧୁପାନ ଆଶେ ଚମ୍ପକ ବିକାଶେ କହିଁ ମଧୁପ ମିଳେ ସଖୀ
(ଅହେ) ସଂଘାତ ସ୍ୱରୂପ କହ ମୋତେ ବାଣୀ
ରବି ପବନ ଅଗମ୍ୟ ଅନ୍ତଃପୁରେ କାହୁଁ ପୁରୁଷ କଲୁ ଅଣି ।"
—ଉଷାଭିଳାଷ

"ଏ ବାଣୀ ଶ୍ରବଣେ ଶୁଣି ସଖୀଗଣେ ପଚାରିଲେ ଏ କି ବିଷୟ
ତାର ତରଳ ନୟନରେ ସରଳହୃଦୟା ପୂର୍ବାଇଚ୍ଛୁ ଲଥ
ବାଳୀରତନ ! ବାଳିଶ ବିଶ୍ୱସ୍ତେ ହୋଇଲୁ
ପୁରୁଷ ପଦ ଦିବାକର ଅଗମ୍ୟ ପୁରେ କାହୁଁ ପ୍ରିୟ ପାଇଲୁ ।"
—ଲାବଣ୍ୟବତୀ

ତାଙ୍କ ପ୍ରେମସୁଧାନିଧିର ନାୟିକ ଅନୁଚନ୍ଦ୍ରା ରାମଚନ୍ଦ୍ର ପଟ୍ଟନାୟକଙ୍କ ଇଚ୍ଛାବତୀ କାବ୍ୟର ନାୟିକ ଅନୁଚନ୍ଦ୍ରାର ସ୍ଥଳବିଶେଷରେ ଅବିକଳ ନକଲ ଏବଂ ଦୀନକୃଷ୍ଣ ଦାସଙ୍କ କ-ଆଦ୍ୟ ନୟମ ରସକଲ୍ଲୋଳ ପଛକୁ ତାଙ୍କ ବ-ଆଦ୍ୟ ନିୟମ ବୈଦେହୀଶବିଳାସ ସ୍ଥୂଳଦୃଷ୍ଟିରେ ନଗ୍ନ ଅନୁକରଣ ମାତ୍ର । କିନ୍ତୁ ପୂର୍ବବର୍ତ୍ତୀ କବିମାନଙ୍କର ଏ ସବୁ ପ୍ରଭାବସତ୍ତ୍ୱେ କବିସମ୍ରାଟ କବିସମ୍ରାଟ । ଇଂଲଣ୍ଡର କବିଶିରୋମଣି ସେକ୍ସପିଅରଙ୍କ ନାଟକମାନଙ୍କର କଥାବସ୍ତୁ ତାଙ୍କ ପୂର୍ବବର୍ତ୍ତୀ ଇଉରୋପୀୟ ବହୁ କବିଙ୍କ କାବ୍ୟ ଓ ନାଟକରୁ ସଂଗୃହୀତ ଏବଂ ସ୍ଥଳବିଶେଷରେ ତାଙ୍କର କେତେକ ଉକ୍ତ ଉକ୍ତ କବିମାନଙ୍କ ଉକ୍ତିର ପ୍ରତିଧ୍ୱନି ମାତ୍ର । କିନ୍ତୁ ରଚନାର ଦିବ୍ୟ ପରିପାଟୀରେ ସେ ସଂଗୃହୀତ ଯାବତୀୟ ସାମଗ୍ରୀକୁ ନିଜସ୍ୱରେ ପରିଣତ କରିଅଛନ୍ତି ଏବଂ ଲୋକୋତ୍ତର ପ୍ରତିଭାର ରସାଣରେ ରସାଣିତ କରି ଅନୁକୃତକୁ ସ୍ୱକୃତ କରି ଥୋଇଅଛନ୍ତି । କବିସମ୍ରାଟଙ୍କ ଉପରେ ତାଙ୍କ ପୂର୍ବବର୍ତ୍ତୀ କବିମାନଙ୍କ ପ୍ରଭାବ ଅସ୍ୱୀକାର କରି ହେବ ନାହିଁ ; କିନ୍ତୁ ପ୍ରତିଭାର ଉର୍ଦ୍ଧ୍ୱସ୍ୱଳତାରେ ସେ

ପୂର୍ବବର୍ତ୍ତୀ ସମସ୍ତ କବିଙ୍କୁ ବହୁତ ପଛରେ ପକାଇ ଦେଇଅଛନ୍ତି ଏବଂ ଯାହାଠାରୁ ଯାହା ଗ୍ରହଣ କରିଅଛନ୍ତି, ତାକୁ ସେକ୍ସପିୟରଙ୍କ ତୁଲ୍ୟ ନିଜସ୍ୱରେ ପରିଣତ କରିଅଛନ୍ତି । ବୈଦେହୀଶବିଳାସର ପ୍ରକାଶପରେ ଓଡ଼ିଆ ଜାତି ଆଉ ରଘୁନାଥବିଳାସକୁ ଗ୍ରହୁନାହିଁ, ଲାବଣ୍ୟବତୀ ଲୀଳାବତୀଙ୍କୁ ପାସୋରିଇ ଦେଇଅଛି ଏବଂ ଚୌପଦୀଚନ୍ଦ୍ର ଓ ଚୌପଦୀ ଭୂଷଣର ମୂର୍ଚ୍ଛନା ଆସ୍ୱାଦ କଲାପରେ ଲୋକେ ନୃସିଂହ ପଟ୍ଟନାୟକଙ୍କ ରମ୍ଭା ଓ ଧନଞ୍ଜୟ ଭଞ୍ଜଙ୍କ ଚୌପଦୀ ମାଳାକୁ ହତାଦର କରି ଅଛନ୍ତି । ରାମଚନ୍ଦ୍ର ପଟ୍ଟନାୟକଙ୍କ ଇଚ୍ଛାବତୀ କାବ୍ୟ ବିସ୍ମୃତିର ଅନ୍ଧକାରରେ ପଡ଼ିଥିବାବେଳେ ପ୍ରେମସୁଧାନିଧି ଏଯାବତକାଳ ଓଡ଼ିଆ ଜାତିର କଣ୍ଠହାର ହୋଇ ରହିଅଛି ।

କଳିଙ୍ଗର ସ୍ଥାପତ୍ୟ ଶିଳ୍ପକୁ ତୁଙ୍ଗିମାର ଶୀର୍ଷଦେଶରେ ପହଞ୍ଚାଇବା ନିମନ୍ତେ ଯେପରି ଧରମାର ଉଦ୍‌ଭବ ହୋଇଥିଲା, କଳିଙ୍ଗର ଲିପିଶିଳ୍ପ ତଥା ଭାବଭାସ୍କର୍ଯ୍ୟକୁ ସେହିପରି ଚରମ ସୀମାକୁ ନେଇଯିବାକୁ କବିସମ୍ରାଟଙ୍କ ଆବିର୍ଭାବ ହୋଇଥିଲା । କୈଶୋରରେ ପିତାମହ ଧନଞ୍ଜୟଙ୍କ ଆୟୋଜନ ଓ ଯୌବନରେ ରାଜ୍ୟ ବିଚ୍ୟୁତି ଓ ପତ୍ନୀବିୟୋଗ ଯୋଗୁଁ ନିରବଚ୍ଛିନ୍ନ ବିବିକ୍ତବିଳାସ ବାଣୀସେବାରେ ପୂର୍ଣ୍ଣ ଆତ୍ମନିୟୋଗ କରିବାପାଇଁ କବିସମ୍ରାଟଙ୍କୁ ଅଖଣ୍ଡ ସୁଯୋଗ ଯୋଗାଇ ଦେଇଥିଲା । କବିଶକ୍ତିର ଚରମ ଉତ୍କର୍ଷ ଅର୍ଜନ ଉଦ୍ଦେଶ୍ୟରେ ବିଶାଳ ପଦସମ୍ଭାର ଉପରେ ପୂର୍ଣ୍ଣ ଆଧିପତ୍ୟ ପାଇଁ ସେ ଅମର, ତ୍ରିକାଣ୍ଡ, ଯାଦବ, ଶାଶ୍ୱତ, ମେଦିନୀ ଓ ବିଶ୍ୱପ୍ରକାଶ ପ୍ରଭୃତି ମୁଖ୍ୟ କୋଷଗ୍ରନ୍ଥ ପୂର୍ଣ୍ଣ ଆୟତ୍ତ କରିଥିଲେ ଏବଂ ସଂସ୍କୃତ ସାହିତ୍ୟର କୌଣସି କାବ୍ୟ ନାଟକ ତାଙ୍କ ଅଧ୍ୟୟନର ପରିସର ମଧ୍ୟରୁ ବହିର୍ଭୂତ ନ ଥିଲା । ବିଶ୍ୱନାଥ କବିରାଜ, ଭୋଜରାଜ, ଦଣ୍ଡୀ, ମମ୍ମଟ ଭଟ୍ଟ ଓ ଆନନ୍ଦବର୍ଦ୍ଧନାଦି ଆଲଙ୍କାରିକମାନଙ୍କ ଗ୍ରନ୍ଥମାନ ମଧ୍ୟ ତାଙ୍କର ପୂର୍ଣ୍ଣ ଆୟତ୍ତ ଥିଲା । ଓଡ଼ିଆ ସାହିତ୍ୟରେ ସେତେବେଳକୁ ଯେତେ ଯେତେ ପ୍ରକାର ରାଗରାଗିଣୀ ବିକଶିତ ହୋଇଥିଲା ସେ ସବୁର ବ୍ୟବହାରରେ ସେ ଧୁରୀଣ ହୋଇ ପଡ଼ିଥିଲେ । ସତେ ଯେପରି କଳିଙ୍ଗ ସାହିତ୍ୟ ଗନ୍ତାଘରକୁ ଅଶ୍ରୁତପୂର୍ବ ବିଭବରେ ବିମଣ୍ଡିତ କରିବା ନିମନ୍ତେ କଳିଙ୍ଗ ଭାରତୀ ଜଣେ ମହାଶକ୍ତିଧର ପୁରୁଷଙ୍କୁ ରଙ୍ଗମଞ୍ଚରେ ଅବତୀର୍ଣ୍ଣ କରାଇଥିଲେ ।

କବିସମ୍ରାଟଙ୍କର ବାଷଠି ଖଣ୍ଡ ଗ୍ରନ୍ଥର ନାମ ପ୍ରକାଶ ପାଇଅଛି । ତନ୍ମଧ୍ୟରୁ ବାଇଶ ଖଣ୍ଡ ଗ୍ରନ୍ଥ ପ୍ରକାଶିତ ହୋଇଅଛି ।

ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ବ୍ୟତୀତ ସେ ଯୁଗର ଅନ୍ୟ କୌଣସି କାବ୍ୟ କବିସମ୍ରାଟଙ୍କ କୃତିମାନଙ୍କ ସ୍ତରକୁ ଉଠି ପାରି ନାହିଁ । ସେ ଯୁଗର ଅନ୍ୟାନ୍ୟ କାବ୍ୟର ଯାହା ଉତ୍କର୍ଷ ତାହା କବିସମ୍ରାଟଙ୍କ ଉତ୍କର୍ଷର ତୁଳନାରେ ସାଧାରଣ ମାତ୍ର । ପରବର୍ତ୍ତୀ ଶତାବ୍ଦୀରେ ଅଭିମନ୍ୟୁ ସାମନ୍ତସିଂହାର ବିଦଗ୍ଧ ଚିନ୍ତାମଣି କାବ୍ୟ ଲେଖି କବିସମ୍ରାଟଙ୍କ କାବ୍ୟରଚନା ଚାତୁରୀ ଯେ ଅନୁକରଣୀୟ, ଏହାହିଁ ମାତ୍ର ପ୍ରତିପାଦନ କରିଥିଲେ । କବିସୂର୍ଯ୍ୟ ବଳଦେବ ରଥଙ୍କ ଅସମ୍ପୂର୍ଣ୍ଣ ଚନ୍ଦ୍ରକଳା କାବ୍ୟ ଅଭିମନ୍ୟୁଙ୍କ ପରେ ପୁନର୍ବାର ଭଞ୍ଜୀୟ ଚାତୁର୍ଯ୍ୟରୁ ଯତ୍କିଞ୍ଚିତ ଦେଶ ଆଗରେ ଉପସ୍ଥାପିତ କରି ପାରିଥିଲା । ଯଦୁମଣି ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଲେଖି କଳ୍ପନା ବିଳାସରେ କବିସମ୍ରାଟଙ୍କ ସମକକ୍ଷ ହେବାର ଉଦ୍ୟମ କରିଥିଲେ । କବିସମ୍ରାଟଙ୍କ ପରବର୍ତ୍ତୀ ଏ ମହାକବିମାନଙ୍କ ମନରେ କବିସମ୍ରାଟଙ୍କ ସମକକ୍ଷ ହେବାର ଏହି ଯେଉଁ ମନୋଭାବ ଜାତ ହୋଇଥିଲା ତଦ୍ଦ୍ୱାରା କଳିଙ୍ଗ ଭାରତୀଙ୍କ ଭଣ୍ଡାର ଅତ୍ୟନ୍ତ ସମୃଦ୍ଧିମନ୍ତ ହେବାର ବାଟ ଫିଟିଥିଲା ।

କଳିଙ୍ଗରେ ରଚନାର ଆଦର୍ଶ ଏ ମନୋଭାବ ଦ୍ୱାରା କିପରି ପରିପୁଷ୍ଟ ହୋଇ ଉଚ୍ଚରୁ ଉଚ୍ଚତର ହୋଇଥିଲା, ତାହା ନିମ୍ନଲିଖିତ ଉଦ୍ଧୃତାଂଶମାନଙ୍କ ଦ୍ୱାରା ପ୍ରତିପାଦିତ ହେବ ।

"ବଇଦେହୀ ଯେ ସୁନ୍ଦରୀ ବ୍ରଜେ ଅମୂଲ୍ୟ ଚୂଡ଼ାମଣି
ବର୍ତ୍ତମାନ ଯେ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି ।
ବଶୀକରଣ ମୂର୍ତ୍ତି ଧାରଣ ଉଚ୍ଚାଟନ ତା ଚାରୁ
ବଧୂ ସୁନ୍ଦରୀ ସେ ପୁରନ୍ଦରୀ ତାହାକୁ ବୋଲିବାରୁ ।
ବହିଲା ବହ୍ନି ପ୍ରଭା ଏ କାହିଁ ଶୋଭା ସଂଗ୍ରହ ପାଇ
ବଣା ବିବେକ ପଣ୍ଡିତ ଲୋକମାନଙ୍କୁ କରି ଦେଇ ।
ବିଗ୍ରହକାନ୍ତି କି ଝଟକନ୍ତି କନକ ଅନାଇଲା
ବାନ ବଢ଼ାଇ ଅଗ୍ନିରେ ଦହି ଶିଳେ କଷାଇ ହେଲା ।
ବଣିକଶ୍ରେଣୀ ଅସମ ଜାଣି ହେଲେ ପ୍ରହାର ଦାମୀ
ବସାଇ ତୁଳେ ରତିଏ ବୋଲେ ତେଣିକା ଲକ୍ଷ ଦେନ ।"

(ବୈଦେହୀଶ ବିଳାସ)

"ବିସଙ୍ଗୀକୁଳ ମଣ୍ଡଳ ମୁକୁଟ
ବ୍ରହ୍ମାଣ୍ଡ ଭଣ୍ଡାର ସାର ପ୍ରକଟ
ବୋଲିବାକୁ ମୁଖ ଲଜ ପାଉଛି
ବର ଉପମାକୁ କରୁଛି ଛି ଛି ହେ
ବିରସ ବଦନ ଆଣି ଯେ
ବିଧୁବନଜ ଦର୍ପଣ ପଣ ପଣ ଦେଲେ ପାଇବେ କି ଆଣି ଯେ ।"
( ବିଦଗ୍ଧ ଚିନ୍ତାମଣି )
—ଅଭିମନ୍ୟୁ ସାମନ୍ତସିଂହାର

"ରହି ସଜଧର ମଧ୍ୟେ ପୟୋଧର ଅଙ୍କୁର ଶୃଙ୍ଗେ ହୃଷ୍ଟମନେ
ଶାଢ଼ୀ ପାଲଟିବା ଛଳେ ନବଜବାଧର ଦୃଷ୍ଟି ଦିଏ ଜଘନେ
ବିପୁଳ
ଉରୁ ଯୁଗଳ ନେଇ ଚୁମ୍ବେ
ଫେରାଇ ବଦନ ପୁଣି ଦୁଃଖିଧନ ନଜର ଦଅଇ ନିତମ୍ବେ ।"
( ଚନ୍ଦ୍ରକଳା )
—କବିସୂର୍ଯ୍ୟ ବଳଦେବ

"ଧାନ ପାନକରୁଁ ସୁମୁଖୀ ସଖୀଏ ଆଣି ନିକ୍ଷେପିଲେ ଅଧରେ
କହିଲ ଏହି ବାଧୀ କେ ଶମ୍ପାଦେହୀ କମା ରଙ୍ଗ ହେଲା କୋଧରେ
ଉପେକ୍ଷୁ ରଙ୍ଗିମା
ଛଯାଇଛନ୍ତି ବିମ୍ବଫଳେ
ପଲ୍ଲବ ମନ୍ଦାର ଶରଣ ତୋହର ଚରଣ ଶତପତ୍ର ତଳେ ।"
( ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର )
—ଯଦୁମଣି ମହାପାତ୍ର

କବିସମ୍ରାଟ ଶବ୍ଦସାଗର ପାର ହୋଇଥିଲେ—ତାଙ୍କଠାରୁ ବଳି ଶାବ୍ଦିକ କେହି ନ ଥିଲେ । ତାଙ୍କ ହୃଦୟସ୍ଥ ଭାବସାଦୃଶ୍ୟ ଅନୁପମ ଥିଲା । ଅଲଙ୍କାର ଗୁମ୍ଫନରେ ସେ ଅପୂର୍ବ ଦକ୍ଷାଣୀ ଥିଲେ । ତାଙ୍କର ପ୍ରତିଭା ଉର୍ଦ୍ଧ୍ୱସ୍ୱଳ ଥିଲା । ବହୁଶାସ୍ତ୍ରଦର୍ଶିତାରେ ତାଙ୍କର କେହି ସମକକ୍ଷ ନ ଥିଲେ । ତାଙ୍କ କାବ୍ୟ କବିତାର ମୂର୍ଚ୍ଛନା ଅମୃତନିସ୍ୟନ୍ଦିନୀ ଥିଲା । ସେ ଏକାଧାରରେ କବିସମ୍ରାଟ ଓ ସଙ୍ଗୀତସମ୍ରାଟ ଥିଲେ । ରଚନା ଉତ୍କର୍ଷର ଆଦର୍ଶ ବା ମାନ ଯେ ଏତେ ଉଚ୍ଚ କରି ଦେଇଗଲେ ଯେ ତାଙ୍କ ସମକକ୍ଷ

ହେବା ତାଙ୍କ ପରବର୍ତ୍ତୀ ସମସ୍ତ କବିଙ୍କର ଧ୍ୟେୟ ହେଲା । ସେ ଅପୂର୍ବ ମନୋଜ୍ଞତାରେ ମଣ୍ଡନ କରି କଳିଙ୍ଗ ଭାରତୀଙ୍କ ସିଂହାତ (ବେଶ) ବନାଇ ନ ଥିଲେ ତାଙ୍କ ପରବର୍ତ୍ତୀ ଅଭିମନ୍ୟୁ, କବିସୂର୍ଯ୍ୟ ଓ ଯଦୁମଣି ପ୍ରଭୃତି କବିମାନେ କବିତାର ଏଡ଼େ ଉତ୍କୃଷ୍ଟ ପର୍ଯ୍ୟାୟ ମଧ୍ୟରେ ଉପନୀତ ହୋଇ ପାରି ନ ଥାନ୍ତେ ।

କବିସମ୍ରାଟ ତାଙ୍କ ବାକ୍ୟକବିତାର ମୂର୍ଚ୍ଛନା ମଧ୍ୟରେ ଆର୍ଯ୍ୟ ସଂସ୍କୃତିର ପରମଶ୍ରେଷ୍ଠ ସାମଗ୍ରୀକୁ ଜୀବନ୍ତ କରି ଥୋଇଅଛନ୍ତି । ବୈଦେହୀଶ ବିଳାସରେ ଚିତ୍ରିତ ତାଙ୍କ ରାମ ସାକ୍ଷାତ ପରଂବ୍ରହ୍ମ—ମର୍ଯ୍ୟାଦା ପୁରୁଷୋତ୍ତମ । ଆଦର୍ଶ ପୁତ୍ର, ଆଦର୍ଶ ଭ୍ରାତା, ଆଦର୍ଶ ପତି ଓ ଆଦର୍ଶ ଶାସକରୂପେ ସେ ଜନତା ସମ୍ମୁଖରେ କବିସମ୍ରାଟଙ୍କ ଅପୂର୍ବ କବିତାର ମାଧ୍ୟମରେ ସମୁଜ୍ଜ୍ୱଳ ରତ୍ନ ରୂପେ ପ୍ରତିଭାତ ହୋଇଅଛନ୍ତି । ପ୍ରକୃତିରୂପିଣୀ ସୀତାଙ୍କୁ ମଧ୍ୟ ସେ ଅପୂର୍ବ ବନକରେ ଚିତ୍ର କରି ଅଛନ୍ତି ।

ଲକ୍ଷ୍ମଣ, ଭରତ, ସୁଗ୍ରୀବ, ହନୁମାନ, ରାବଣ, ଇନ୍ଦ୍ରଜିତ, ବିଭୀଷଣଙ୍କ ଚରିତ୍ର ମଧ୍ୟ ସେ କମ ଦକ୍ଷତାର ସହ ଚିତ୍ର କରି ନାହାନ୍ତି । ବୈଦେହୀଶବିଳାସ ତାଙ୍କ ମୂର୍ଚ୍ଛନାମୟୀ ଓ ଅଳଙ୍କାରମୟୀ ଭାରତୀଙ୍କର ମନୋଜ୍ଞ ବାହନ ସତ୍ୟ, ତଥାପି ରାମଚରିତ ରୂପେ ତାହାର ମହତ୍ତ୍ୱ କୌଣସି ଅଂଶରେ ନ୍ୟୁନ ନୁହେଁ । ଦକ୍ଷିଣ ଭାରତର କାମ୍ବ ରାମାୟଣ ଓ ଉତ୍ତର ଭାରତର ତୁଳସୀ ରାମାୟଣ ସହିତ ବୈଦେହୀଶବିଳାସ ସମ୍ୟକରୂପେ ତୁଳନୀୟ । ଏ ସୀମିତ ଭାଷଣରେ ତହିଁର ଅବକାଶ ଆଦୌ ନାହିଁ । ଚରିତ୍ର ଚିତ୍ରଣକୁ ମାନଦଣ୍ଡ କରି ଯଦି କବି-ଚରିତକୁ କଳନା କରାଯାଏ, ତାହାହେଲେ ବୈଦେହୀଶବିଳାସର ରଚୟିତାଙ୍କୁ ସନ୍ଥ କହିଲେ ସତ୍ୟର ଅପଲାପ ହେବ ନାହିଁ । ବୈଦେହୀଶବିଳାସ, ରାମଲୀଳାମୃତ, ଅବନାରସତରଙ୍ଗର କବି ମେ ଉଚ୍ଚକୋଟୀର ଜଣେ ସନ୍ଥ ଭବିଷ୍ୟତର ଅନୁଶୀଳନ ଓ ଗବେଷଣା ଦ୍ୱାରା ତାହା ଅବଶ୍ୟ ଦିନେ ପ୍ରତିପାଦିତ ହେବ । ଯେଉଁ କବି ତାଙ୍କ ରସକାଦ୍ୟମାନଙ୍କ ଭଣିତାରେ—

"ଜିରତ ବିମ୍ବ ଅଧର      ଭରତ ଜ୍ୟେଷ୍ଠ ସୋଦର
ନିରତେ ମୋ ଚିତ୍ତେ କରି ସଦ୍ମ ହେ
କହେ ଉପଇନ୍ଦ୍ର ଭଞ୍ଜ      ପ୍ରଭୋ ରଘୁବଂଶରାଜ
ଅଯୋଧ୍ୟା ରାଜନ ପରଂବ୍ରହ୍ମ ହେ ।"

ଏବଂ

"ବାମେ ଜାନକୀ ଶୋଭିତ
ଦକ୍ଷିଣେ ଲକ୍ଷ୍ମଣ ହେତ
ମଧ୍ୟେ ବିଜେ ଯେଉଁ ଶ୍ୟାମଳ ସୁନ୍ଦର
ତାଙ୍କୁ ଉପଇନ୍ଦ୍ର ଶରଣ ।"

ପ୍ରଭୃତି ଭଣିତା କରିପାରନ୍ତି, ତାଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ଯୋଗୀ ବା ସନ୍ଥରୂପେ ଦେଖିବା ତାହା ପକ୍ଷରେ ଅସଙ୍ଗତ ବା ଅସ୍ୱାଭାବିକ ହେବ ନାହିଁ ।

ଏପରି ଭାବିବା ତ ଦୂରର କଥା, ଲୋକେ ଅସ୍ପୃହଣୀୟ ସମାଲୋଚନାରେ ପଥଭ୍ରଷ୍ଟ ହୋଇ କବିସମ୍ରାଟଙ୍କ ରାମଚରିତମୂଳକ ଗ୍ରନ୍ଥମାନଙ୍କ ଉପରେ ଦୃଷ୍ଟି ପକାଉ ନାହାନ୍ତି ଓ ତାଙ୍କ ଗ୍ରନ୍ଥମାନଙ୍କରେ ସୀତା ରାମଙ୍କଠାରେ ସେ ଯେଉଁ ଆତ୍ମନିବେଦନ କରି ଅଛନ୍ତି, ତା'ପ୍ରତି ମନନଶୀଳ ହେଉନାହାନ୍ତି, ବରଂ କହୁ ହେଉଅଛନ୍ତି ଯେ କବିସମ୍ରାଟଙ୍କର ରସକାବ୍ୟମାନ ଲେଖି ଅଶ୍ଳୀଳତା ବାଢ଼ିବା ଉଚିତ ହୋଇନାହିଁ । କବିସମ୍ରାଟଙ୍କ ପ୍ରତି ଏ ଦୋଷାରୋପ ଆଦୌ ସମୀଚୀନ ନୁହେଁ ।

ସେ ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ନିପୁଣତମ ଚିତ୍ରକର । ବିବାହ ଦାମ୍ପତ୍ୟ ପ୍ରେମ ଉପରେ ପ୍ରତିଷ୍ଠିତ ଏବଂ ସମାଜର ଭିତ୍ତି ହେଉଛି ବିବାହ । ଆର୍ଯ୍ୟ ସମାଜକୁ ସୁଦୃଢ଼ କରିବାର ସାଧନ ହେଉଛି ବିବାହ ତଥା ଦାମ୍ପତ୍ୟ ପ୍ରେମ । କବିସମ୍ରାଟ ତାଙ୍କ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ରସିକହାରାବଳୀ, ପ୍ରେମସୁଧାନିଧି ଓ ରସଲେଖା ପ୍ରଭୃତି ରସକାବ୍ୟରେ ଦାମ୍ପତ୍ୟ ପ୍ରେମର ଯେଉଁ ଅନବଦ୍ୟ ଚିତ୍ର ଦେଇଅଛନ୍ତି ସେ ପ୍ରେମ କଳିଙ୍ଗ ସମାଜରେ ମଜ୍ଜାଗତ । କବିସମ୍ରାଟଙ୍କ ଲେଖନୀ ତହିଁର ଚିତ୍ର ବାଢ଼ି ଧନ୍ୟ ହୋଇଅଛି । ଏ ଦେଶରେ ଅଶ୍ଳୀଳତାର ଦୁହାଇ ଉଠାଇଅଛନ୍ତି କେତେକ ଇଂରାଜୀଶିକ୍ଷିତ ବ୍ୟକ୍ତି, ଯେଉଁମାନେ କି ପାଶ୍ଚାତ୍ୟ ଦୃଷ୍ଟିର ପ୍ରତିବେଶରେ ଜଗତଟାକୁ ଦେଖି ନିଜର ମତାମତ ଗଠନ କରିଛନ୍ତି ଓ ସେହି ମତାମତରେ ସମସ୍ତଙ୍କୁ ପ୍ରଭାବିତ କରି ଯାଉଛନ୍ତି ।

ଆର୍ଯ୍ୟ ସମାଜରେ ଯେଉଁ ରୀତି ନୀତି ଓ ଯେଉଁ ଆଚାର ବ୍ୟବହାର ପ୍ରଚଳିତ, ତାହା ଚିରକାଳ କବିମାନଙ୍କ କାବ୍ୟ କବିତାରେ ରୂପ ପାଇ ଆସିଛି । ଆଦିରସାତ୍ମକ କାବ୍ୟ ଭାରତରେ କବିସମ୍ରାଟ ସର୍ବପ୍ରଥମେ ସୃଷ୍ଟି କରି ନାହାନ୍ତି । ତାଙ୍କର ବହୁ ପୂର୍ବରୁ କାଳିଦାସ ଓ ଶ୍ରୀହର୍ଷ ପ୍ରଭୃତି କବିମାନେ ଶୃଙ୍ଗାର ରସରେ ନିଜର କୃତିମାନଙ୍କୁ ରସାଣିତ କରି ପାଠକମାନଙ୍କର

ଅନୁରାଗ ଅର୍ଜନ କରିଅଛନ୍ତି; କିନ୍ତୁ କେହି ହେଲେ ସେମାନଙ୍କୁ ଅଶ୍ଳୀଳ ବୋଲି କହିବାର ଧୃଷ୍ଟତା କରି ନାହିଁ । ଓଡ଼ିଶାରେ କବିସମ୍ରାଟଙ୍କ ଏହି ଯେଉଁ ଦୁର୍ନାମ ଦିଆଯାଇଅଛି, ତାହାର କାରଣ ତାଙ୍କ କବିତାକୁ ନିନ୍ଦିତ କରାଇ ନେଇ ଆଧୁନିକ ସ୍ରୋତରେ ଲିଖିତ କବିତାକୁ ଜନତା ମଧ୍ୟରେ ପ୍ରଚଳିତ ଓ ପ୍ରସାରିତ କରିବା । ଆଧୁନିକପନ୍ଥୀମାନଙ୍କର ଏ କୌଶଳ ଏବେ ଆଉ କାହା ଅଗୋଚର ନାହିଁ । ମୋର ଆଶା ହୁଏ ଯେ ବିଜାତୀୟ ପ୍ରଭାବର ପୂର୍ଣ୍ଣ ନିରାକରଣ ପରେ ଆର୍ଯ୍ୟ ଆଦର୍ଶ ପୁନଃ ପ୍ରତିଷ୍ଠିତ ହେବ ଏବଂ ତହିଁର ପ୍ରତିବିମ୍ବ ସ୍ୱରୂପ ଜାତୀୟ କବିମାନଙ୍କ କାବ୍ୟ-କବିତା ଦେଶର ସବୁଶ୍ରେଣୀର ଲୋକଙ୍କଠାରୁ ତହିଁର ପ୍ରାପ୍ୟ ଆଦର ଲାଭ କରିବ । ବର୍ଷ ବର୍ଷ ଧରି ନିମଦର୍ଶିଷ୍ଟ ଜାତୀୟ ଅନୁରାଗର ପରିଷା ମଧ୍ୟରେ ଅନୁଷ୍ଠିତ ହେଉଥିବା କଳିଙ୍ଗ-ଭାରତୀ ଭଞ୍ଜ ଜୟନ୍ତୀ ଏହାର ଅଗ୍ର ସୂଚନା ।

ଯେଉଁ ସମାଲୋଚକମାନେ ବିଜାତୀୟ ପ୍ରଭାବରେ ପ୍ରଭାବିତ ହୋଇ କବିସମ୍ରାଟ ପ୍ରଭୃତି ଜାତୀୟ କବିମାନଙ୍କ କାବ୍ୟ-କବିତାରେ ଅଶ୍ଳୀଳତାର ଆରୋପ କରୁଅଛନ୍ତି, ସେମାନଙ୍କର ଓ ସର୍ବସାଧାରଣଙ୍କର ଅବଗତି ନିମନ୍ତେ ନିମ୍ନରେ ମୁଁ ଦୁଇଜଣ ବିଶ୍ୱକବିଙ୍କ ଲେଖାର କେତେକ ଅଂଶ ଉଦ୍ଧାର କରୁଅଛି—

## ସେକ୍ସପିୟର

1. "I conjure thee by Rosalind's bright eyes,
By bright fohehead and her scarlet lip.
By her fine foot, straight leg, and quivering thigh.
And the demesnes that there adjacent lie."

( Romeo and Juliet )

2. "Since I have hemmed thee here.
Within the circuit of this ivory pale,
I will be a park and thou shalt be my deer;
Feed where thou wilt, on mountain or in dale.
Graze on my lips and if those hills be dry,
Stray lower, where the pleasant fountain lie.
Within this limit is relief enough.
Sweet bottom grass, and high delightful plain
Round rising hillocks, brakes obscure and rough,
To shelter thee from tempest and from rain
Then be my deer, since I am such a park"

(Venus and Adonis)

## କାଳିଦାସ

"କ୍ୱ ଭ୍ରାତଶ୍ଚଳିତୋଽସି ? ବୈଦ୍ୟକଗୃହେ କିନ୍ତନ୍ ? ଶାନ୍ତ୍ୟୈ ରୁଜାଂ
କିଂତେ ନାସ୍ତି ସଖେ ! ଗୃହେ ପ୍ରିୟତମା ସର୍ବାନ୍ ଗଦାନ୍ ହନ୍ତି ଯା
ବାତଶ୍ଚୈବ କୁଚକୁମ୍ଭମର୍ଦ୍ଦନବଶାତ୍ ପିତ୍ତଞ୍ଚ ବକ୍ତ୍ରାମୃତାତ୍
ଶ୍ଲେଷ୍ମାଣଂ ବିନିହନ୍ତି 'ହନ୍ତ ସୁରତବ୍ୟାପାର କେଳିଶ୍ରମାତ୍ ।"

(ଶୃଙ୍ଗାର ତିଳକ)

ଉପସଂହାରରେ ମୁଁ କବିସମ୍ରାଟଙ୍କ ଲୋକୋତ୍ତର ପ୍ରତିଭାର ସମ୍ୟକ ପ୍ରଖ୍ୟାପନ ପାଇଁ ଦେଶର ସର୍ବତ୍ର ବ୍ୟାପକ ବ୍ୟବସ୍ଥା ହେଉ ବୋଲି ସମସ୍ତଙ୍କଠାରେ ବିନୀତ ନିବେଦନ କରୁଛି । କଳିଙ୍ଗର ସେ ମହାର୍ଘମଣି । ସେ କଳିଙ୍ଗର ଆଧ୍ୟାତ୍ମ ଜୀବନର ତଥା ପ୍ରାକୃତ ଜୀବନର ଉପଭୋଗ ପାଇଁ ଯେଉଁ ପୁଷ୍କଳ ସମ୍ଭାର ଥୋଇ ଦେଇ ଯାଇଅଛନ୍ତି, ତାହା ଅମୂଲ୍ୟ । ଏହା ଅବବୋଧ କରି ପୂଜ୍ୟ-ପୂଜାରେ ବ୍ରତୀ ହେବାକୁ ଭଗବାନ ଆମ୍ଭମାନଙ୍କୁ ଯୋଗ୍ୟତା ପ୍ରଦାନ କରନ୍ତୁ ।

**ଜୟ ମା କଳିଙ୍ଗ ଭାରତୀ**

---

